ଭକ୍ତକବି ୰ ଦୀନକୃଷ୍ଣ ଦାସଙ୍କ ବିରଚିତ

# ଅଲଙ୍କାରବୋଲି



ଚତୁର୍ଦ୍ଦଶ ସଂସ୍କରଣ

ପ୍ରକାଶକ

**ଶ୍ରୀରାଧାରମଣ ପୁସ୍ତକାଳୟ**

ବାଲୁବଜାର, କଟକ

ପୋ: ଅ: ଚାନ୍ଦନୀଚୌକ

ମୂଲ୍ୟ ୫ ୦ /୬ ଛଅ ପଇସା ମାତ୍ର

# ଅଲଙ୍କାର ବୋଲି



ରାଗ— ଚକ୍ରକେଳି

ଜୟ ଜୟ ନୀଳଗିରି ମଣ୍ଡନ । ଜୟ ସୁଦାମା ଦାରିଦ୍ର୍ୟଭଞ୍ଜନ ।
ଜୟ ନନ୍ଦଘୋଷରଥବିହାରୀ । ଜୟ କୁବୁଜା କୁଜ ଉଦ୍ଧାରୀ ।
ଜୟ ଅଘଟଭଞ୍ଜନ ଅଚ୍ୟୁତ । ଜୟ ପରମାନନ୍ଦ ଗୋପୀନାଥ ।
ଜୟ ମଡ଼ମାମେରୁ ପୀତାମ୍ବର । ଜୟ କଂସନାଶନ ବେଣୁଧର ।
ଜୟ ଦ୍ରୌପଦୀ ମାନଉଦ୍ଧାରଣ । ଜୟ କରୁଣାସିନ୍ଧୁ ନାରାୟଣ ।
ଜୟ ଗଜଉଦ୍ଧାରଣ ମୁରାରି । ଜୟ ଶ୍ୟାମସୁନ୍ଦର ଦଇତାରି ।
ଜୟ ଶରଣପଞ୍ଜର ଗୋବିନ୍ଦ । ଜୟ ଗରୁଡ଼ଧ୍ୱଜ ଆନନ୍ଦ ।
ଜୟ କମଳଲୋଚନ କେଶବ । ଜୟ ରାଧାରମଣ ବାସୁଦେବ ।
ବୃନ୍ଦାବନମଣ୍ଡନ ଚକ୍ରଧର । ଦୁଃଖୀ ଦୁଃଖ ଛମିର ସୁଧାକର ।
ମହାବାହୁ ମହାବିଘ୍ନ ଭଞ୍ଜନ । ପୁରୁଷୋତ୍ତମ କଠଚ ସ୍ୱଜନ ।
ବଜତୁଲେ ନନ୍ଦଘରେ ବଢ଼ିଲେ । ଇନ୍ଦ୍ର ବିବାଦେ ମନ୍ଦର ଧଇଲେ ।
ଭୁଜେ କେଶୀପିଣ୍ଡ କଲେ ମନ୍ଥନ । ବେନେ ଭଙ୍ଗିଲେ ଯାମଳାର୍ଜ୍ଜୁନ
ବକାସୁରକୁ ମାଇଲେ ବନରେ । କାଳିଦର୍ପ ଭାଙ୍ଗିଲେ କାଳିନ୍ଦୀରେ ।
ବେଣୁବଜାଇ ଗୋପୀଙ୍କି ମୋହିଲେ । ନାନାରୂପ କପଟରେ ଧଇଲେ
ଦିନେ ହୋଇଲେ କାଚସ୍ୱମୂରତି । ଦିନେ ବୃନ୍ଦାବନେ ହେଲେ ନୃପତି
ଦିନେ ମୂଷାହୋଇ ଖୋଷାକାଟିଲେ । ଦିନେ ମାର୍ଜ୍ଜାରୀ ସ୍ୱରୂପ ଧଇଲେ
ଦିନେ ଗୁଣିଆ ହୋଇଲେ ଗୋପରେ । ଦିନେ ଦୂତ ହେଲେ ରାଧା
ମନ୍ଦିରେ । ଦିନେ ମାଳୀ ହୋଇ ଫୁଲଗୁନ୍ଥିଲେ । ଦିନେ ଶଙ୍ଖାରୀ
ମୂରତି ଧଇଲେ । ଦିନେ ହୋଇଲେ ଅପୂର୍ବ ମୂରତି । ଦିନେ ଦିନେ
ନଟବର ବୃଅନ୍ତ । ଦିନେ ରଙ୍ଗଣୀମୂରତି ଧଇଲେ । ଦିନେ
ଘାଟୁଆଳ ବେଶ ହୋଇଲେ । ଦିନେ ଦୁତୀକ ଜାଙ୍କ ବେଣୁମୁଣି ।

ହସି ବୋଇଲେ ବିରଜତରୁଣୀ । ଅଜ ସୁଧାକୁ ଆଣିଦେବୁ ମୋତେ । କର ଧରି ମୁଁ ମାଗୁଅଛି ତୋତେ । ମୋର ଶରଧା ସୁଧା ସଙ୍ଗତେ । ତାକୁ ଆଣିଦେବୁ ମୋର କଥକେ । ଚାରୁ ଚନ୍ଦ୍ରବଦନୀ ସୁରୂପସୀ । ନବବୟସୀ ପଙ୍କଜ ନୟନୀ । ଗୁଣ ଗୁଣିଲେ ତାର ନ ସରିବ । ଜୀବ ଥିଲେ ତ ପାସୋର ନ ଯିବ । ମୋର ଶିର ଫୁଲଗନ୍ଧ ସୁଗନ୍ଧୀ । ଦିନ ସରୁନାହିଁ ତାକୁ ସୁମରି । ତୋତେ ମୋର ଶପଥ ଗୋ ସଖି । ଅଜ ସୁଧାକୁ ମୋତେ ଦେବୁ ଆଣି । ଦୂତୀ ବୋଇଲେ ଶୁଣ ହେ କେଶବ । ସୁଧା ତୁମ୍ଭ ଲାଗି କଷ୍ଟେ ମରିବ । ଯେବଣେ ଗଲେ ତୁମ୍ଭର ଅପବାଦ । ତାକୁ ସ୍ୱପ୍ନରେ ନ ମ ଛାଡ଼ି ନନ୍ଦ । ସାଇ ପଡ଼ଶା ଦେଖି ନ ପାରନ୍ତି । ତାକୁ ଦେଖିଲେ ଭଗ ମେଲୁଥାନ୍ତି । କହି ନନ୍ଦେ ବୋଇଲେ ସୁଧାକୁ । ତୁ ଗୋ ନ ଯିବୁ ଯମୁନା ଜଳକୁ । ଦାଣ୍ଡେ ଚୋହର ହାଟ ବସିଥାଇ । ସିଛମଣିଲେ ଦେବ ଯେ ବଡାଇ । ନିରନ୍ତରେ ରହିଥାଉ କୃଷ୍ଣକୁ । ମୋର ଜ୍ୱଳ ଜବଳ ତୋ ମନକୁ । ତୋତେ କି ମନ୍ଦ କହିବ ମାଧୋଇ । ତାକୁ ଦେଖିବାକୁ ଯାଉ ଗାଧୋଇ । ଲାଜ ନାହିଁ ମୁଖକୁ ଅଜ ତୋର । କେବଳହସା କରୁଛୁ ନିରନ୍ତର । କୁଅଶୁଣୀ ହୋଇ ଲାଜ ନ ପାଉ । ବେଳକ ଦଉଡ଼ ଖଣ୍ଡେ ତୁ ନ ଦେଉ । ଏବେ କଳଙ୍କ ତୁ ହେଉ ଚାହିଁକି । ଏତେ ହଟହଠା ହେଉ ଯଚ୍ଛିକି । ଏବେ କଳଙ୍କ ପଣେ ଖେଳେ ଜାଉ । କଳ ବୋଇଲେ ବାଜା କାନ୍ଧଥାଉ । ଅମ୍ଭ ଘରୁ ଅଜ ଯାଅ ବାହାରି । କୃଷ୍ଣ ଥାଉ ପଛେ ତୋତେ ଅକୋଇ । ଶାଶୁ ବଚନ ଅତି ଅଗୋଚର । ଏହାରୁଷେ ଶାଶୁ କହେ ଉତ୍ତର । ତୁ ଲେ ଅସତୀଙ୍କ ସଙ୍ଗେ ପଡ଼ିଲୁ । କଥ ଶ୍ରୀକୃଷ୍ଣଙ୍କୁ ସେନ ମାଡିଲୁ । ମୋର ପୁଅକୁ ମନରେ ନ ଅଣୁ । ଅନ ଶାଶୁଙ୍କ ପ୍ରାୟେ ମୋତେ ମଣୁ । ଘର ଭିତରେ ଟିକିଏ ନ ରହୁ । ଦାଣ୍ଡ ଦୁଆରେ ତୁ କି ଦେଖୁଥାଉ ॥ ତରି ନ ଯାଉ ଅନ୍ଧାର

ଘରକୁ । ସ୍ୱଜ ହେଲେ ଯାଉ ବୃନ୍ଦାବନକୁ । ସବୁଅଟେ ତୋର କଥା ଶୁଭଇ । ବୁଢ଼ୀ ନ ମରୁ ଘଇଁକୁ କପଇଁ । କିଛି ପଦରଥର ଖୋଷାଖୋଷ୍ଟି । କଥାପଦେ କହୁଲେ କେତେ କୃଷ୍ଟ । ଘରେ କଳ ନ ଥାଇ ରୁଷୁଥାଉ । ପାଣି ଥରେ ଅଣି ବେଳ ବୁଡ଼ାଉ । କେତେ ଘଇକୁ ଅନାଉ ବାଟରେ । ଏତା ସୁନ୍ଦରୀ ହୁଡ଼ ଗୋପ-ପୁରେ । କେଉଁ ହାଟୁଆଣୀ ଅଛୁ ଏମନ୍ତ । କେଶ୍ୟା ପ୍ରାୟେକ ତୋହର ଚରିତ । ସେହୁ କଥାରେ ଥାଇ ତୋର ମନ । ସବୁ କରୁ ଯେ ଥାଉ ଅନୁମାନ । ସହୁ ନେଲକୁ ଅଧିକ ହୋଇଲୁ । ମୋର କୂଳେ କଳଙ୍କ ଲଗାଇଲୁ । ଯାହା ସେନ କରିବୁ ଘରଦ୍ୱାର । ତାକୁ ଦନେ ନ ବୋଳବୁ ମୋହର । ଭୂଅଣୁଣୀ ଲକ୍ଷଣ ଠିକ ଏହୁ । ତୋତେ ଦେଖି ମୁଁ ହୃଦେ ଡରୁଥଇ । ଏହୁ ମତେ ଲଗିଥ'ନ୍ତି ସମସ୍ତେ । ଶାଶୁ ଶ୍ୱଶୁର ଗୋରସ୍ତ ସହିତେ । କାଳ ସଧିକା ମୋଠାରୁ ଅଲସ । କା:ନ୍ଦ ସମସ୍ତ ମୋ ଅଗେ କହୁସ । ଅଜ୍ କ କର ଅଣିବ ତାହାକୁ । ଦବାକଣୀ ଲଗିଥାନ୍ତି ଯାହାକୁ । ଯେତେବେଳେ ଯମୁନାକୁ ଅସଇ । ତାର ନଣନ୍ଦ ଲଗି ବସିଥାଇ । ଏବେ ବୁଦ୍ଧି ଦଶୁନାହିଁ ମୋହର । ତୁମ୍ଭ ଉପାୟ ଥିଲେ ତୁମ୍ଭେ କର । ଦେଖି ମୁହିଁ ଉପାୟ କରୁଥିବ । ପଛେ ବାରତା ଅପି କହୁସିବ । କହୁ ଘରକୁ ଚଳଲ ଦୂତିକା । କୃଷ୍ଣ ଶୁଣି ହେଲେ ଅତି ତାଟକା । କାମେ କାତର ହେଲେ ନନ୍ଦଶିଷ୍ଟ । ଯାଇ ବୃନ୍ଦାବନେ ହେଲେ ପ୍ରବେଶ । ତହିଁ ଦଗ୍ଧର କରନ୍ତି ଶୀହର । ଅଙ୍ଗ ସୁଧାରୁ ଛେଟିଲା କାପର । ଯେଉଁ କଥାରେ ବସନ୍ତ କାମିନୀ । ଅଛ ସେହୁ ପଦାର୍ଥ ସିଦ୍ଧ ସେକ । ଏତେ ଦଗ୍ଧର ମନରେ ଶୀପତି । ରଙ୍ଗେ ହୋଇଲେ ସୁନାଣ୍ଟ ମୂରତି । କପଟରେ ଚଢଲେ ଅଳଙ୍କାର । ଯହିଁ ଶରଧା ହେବ ସ୍ୱଧିକାର । ରଙ୍ଗବସ୍ତ୍ରପାଗ ମୁଣ୍ଡେ ବାନ୍ଧିଲେ । ସୁନାକର ଫେର ତହିଁ ବେଢ଼ିଲେ ।

ଖଞ୍ଜିଲେ ରତନ ଶୋଭା ମନୋହର । ନାସାପୁଟେ ସୁନାଦଣ୍ଡି ରୁଚିର ॥
କଣ୍ଠତଟେ ମୁକ୍ତାର ମାଳବର । ଦେଖି ପାଷାଣ ମିଳ ତ ତନ ।
ସୁବା ଯୁବତୀ-ମଦନ ପାସୋର । ପତିବ୍ରତା ନାରୀଙ୍କ ଧୈର୍ଯ୍ୟହର ।
ଦନ୍ତ ପାଳେ ପାଟ ଶୋଭି ଦଣ୍ଡୁ । ତହିଁ ସୁନାଖିଲ ମାନ ମଣ୍ଡୁ ॥
କଣ୍ଠ ତଟରେ ସୁନା ଝଣ୍ଟିମାନ । କରେ ସୁନାକଙ୍କଣ ଶୋଭାବନ ।
ସୁନାମୁଦି ସମସ୍ତ ଅଙ୍ଗୁଳିରେ । ନାନା ରତନ ବସିଛି ତହିଁରେ ॥
କାଖେ ନକଛ କାଠି ଶୋଭାବନ । ତନୁ ନିନ୍ଦଇ କୋଟିଏ ମଦନ ।
ରଙ୍ଗ ହଂସାବତୀ ଫେଟା ପିନ୍ଧିଲେ । ଖାପଖଣ୍ଡ୍ୟା ଅଣ୍ଟାରେ
ବାନ୍ଧିଲେ । ଯଷ୍ଟି ସେନାଣଛନ୍ତି କାମଡରେ । ଜମ ବଜଦଅ ଛନ୍ତି
କାନ୍ଧରେ । ବେନି ଗୋଡ଼େ ମଖମଲ ପାଣ୍ତ୍ରୋଇ । ଜରି କାମରର
ସୁନ୍ଦର ଦିଶଇ । ନୁଆ ମୃଦଛ ବସୁସ ଏଗାର । ଦେଖି କୁଳବତୀ
ହେବେ କାତର । ଧଳାକେତଫା ମୁଣିଏ ସଜଡ଼ି । ସଜ ପୁରଇ
ବାନ୍ଧିଲେ ଦଉଡ଼ି । ବେଶ ହୋଇ ବନ୍ତ୍ରିହେଲେ ବାହାର । ସଜମୁଣି କି
ପକାଇ କନ୍ଧର । ଖଣ୍ଡଦୂର ବୃନ୍ଦାବନ୍ତୁ ଅଇଲେ । ସବୁ ଗୋପୀଙ୍କୁ
ବାଟରେ ଦେଖିଲେ । କାନ୍ଦେ କୃଷ୍ଣ ବେଜଛନ୍ତି ସମସ୍ତେ । ରାଧା
ସଙ୍କଟନ୍ଦୂତିକା ସହିତେ । କୃଷ୍ଣ ଅନାଇ ଗୋପୀଙ୍କି ହସିଲେ । ଅସି
ଗୋପୀଙ୍କ ନିକଟେ ବସିଲେ । ଉଷ୍ମହୋଇଣ ବୋଲନ୍ତି ଶ୍ରୀପତି ।
ମୋର ବୋଲ ଶୁଣ ବ୍ରଜଯୁବତୀ । ଅମ୍ଭେ ଥିଟିବୁଁ ଦିବ୍ୟ
ଅଳଙ୍କାର । ଦବାଯିବ ସ୍ତ ନଗରେ ହୁମ୍ବର । ଗୋପୀ ବୋଲନ୍ତି
କୃଷ୍ଣଙ୍କୁ ବଚନ । ବାବୁ ଶୁଣରେ ନନ୍ଦନନ୍ଦନ । କି କି ଅଳଙ୍କାର
ଅଛି ଢେ଼ର । ଦେଖା ଦେଖିବା କେମନ୍ତ ସୁନ୍ଦର । ଭଲ
ହେଲେ ଅମ୍ଭଠାରେ ବିକିବୁ । ଟଙ୍କା ପଇସା ସବୁ ଗଣିନେବୁ ।
କୃଷ୍ଣ ବୋଲନ୍ତି ଶୁଣରେ କାମିନି । ତୁମ୍ଭେ ପାରିବ କାହିଁ ତାହା
ସେନି । ସବୁ ଚନ୍ଦନ ସୁନା ଅଳଙ୍କାର । ଅଷ୍ଟରତ୍ନ ଲଗିଅଛି ତହିଁର ।
ସ୍ୱଳ୍ପ ଅଙ୍ଗାରେ ଅଣ୍ଟିଅ ଦଶିବ । ମୂଲ୍ୟ ତାହାର ଅଧିକ ହୋଇବ ।

ମୁଁ ଯେ ଅଣିଛୁ ଯେତେ ଅଳଙ୍କାର । ଅପୁରନ୍ଦରୁ ଦଶିବ ସୁନ୍ଦରି ।
ଅଛୁ ଅଳଙ୍କାର ଯାହା ଲୋଡ଼ିବ । କେଉଁ କଙ୍କଣି ଏରୂପେ ଗଢ଼ିବ ।
ସବୁ ଭଲ ଦେଖ ଯିନା ବଜେଡ଼ । ଭଲ ନୋହଲେ କେଉଁ କଥା ଲୋଡ଼
ମୋର ସବୁ ଅଳଙ୍କାର ଯତନ । ରାଜକୁମାରୀଙ୍କ ଯୋଗ୍ୟ ସେମାନ ।
ଗୋପୀ ବୋଇଲେ କୃଷ୍ଣଙ୍କୁ ଉତ୍ତର । ବାବୁ ଶୁଣ ରେ ବଖାଣି କୁମର ।
ମୂଲ୍ୟ କହୁଛ ବର ନ କହୁବୁ । ତୋର ଯଥାର୍ଥ ଗଣ୍ଡା ଗଣିନେବୁ ।
ତୁ ତ ମହାଜନ ପୁଅ ବୋଲାଉ । ମିଛ କରି କହୁବୁ ନାହିଁ ଅଉ ।
ମୂଲ୍ୟ ସବୁରି ମନକୁ ଆସିବ । ଦାଣ୍ଡ ମୂଲ୍ୟରୁ ଅଧିକ ନୋହୁବ ।
କୃଷ୍ଣ ବୋଇଲେ ଶୁଣ ଗୋ ସୁନ୍ଦରି । ଲାଭ ନ ଥିଲେ ବଣିଜ ନ କରି ।
ତୁମ୍ଭେ ମଥୁରା ବିକ ଯାଉଥାଅ । ଲାଭ ନ ପାଇଲେ କାହିଁ ନ ଦିଅ ।
ସ୍ନେହମଣ୍ଡ ଯିନା ସବୁ ଜାଣିକା । ଲାଭ ନ ଥିଲେ କେଉଁଠାରେ ବିକା ।
ରାଧା ବୋଇଲେ ଯଥାର୍ଥ କହୁଲ । ବୟସରେ ସାନ ହେଲେ କି ହେଲ । କାହା ପୁଅ ଏତେରୂପେ ଜାଣିବ । ଏତେ ପ୍ରକଟ କାହାକୁ ଆସିବ । ମହାଜନପୁଅ ଏହା ଜାଣଇ । ଏହା ଜାଣିବ ଆନ ଲୋକ କାହିଁ । ଏହାକୁହଁ ପୁଣି ଏହା ଅଇଲା । ପେଟପାଇଁ ଏତେ ଦୂର ଧାଇଁଲା । ମାତା ପିତା କେମନ୍ତେ ମୂରୁଛଲେ । ଅଳଙ୍କାର ଏହାକୁ ଦେଇଥିଲେ । ଗୋପୀ ବୋଇଲେ ଶୁଣ ଗୋ ମିତଣି । ଏତ ସହଜେ ବାଳୁତ ବଖାଣି । ବିକା କଣା କପର ଏ ଜାଣିଲା । ଯେତେ ଚତୁର ହୋଇଲେ କି ହେଲା । କୃଷ୍ଣ ବୋଲନ୍ତି ଗୋପୀଙ୍କୁ ଉତ୍ତର । କାହା ଜାଣିବା କାହାକୁ ଉଚାର । ତୁମ୍ଭ ପୁଅ ତ ବୟସରେ ସାନ । ବିଚା କଣକୁ ତୁମ୍ଭର ସମାନ । ସାନ ବଡ଼ ହୋଇ କସ କରିବ । ଯେବେ ଆପଣା ଜାଣିବା ଶିଖିବ । ଏବେ ସେ କଥାମାନ ଦୂର କର । ଯେବେ ଦେଖିବ ଯେନ ଅଳଙ୍କାର । ନାହିଁ କଲେ ଚଳ ଯିବୁ ଗୋପକୁ । ଅମ୍ଭେ ନ ପାରିବୁ ହରିବରକୁ । ଏଣେ ବେଳ ହୋଇଲାଣି ଉଛୁର । ଚଳ ଯିବାକୁ ପଥ ବହୁଦୂର ॥

କଥା କହିଲେ ବଢ଼ା ନ ସରିବ । ତୁମ୍ଭ ସବୁର ଶରଧା ସରିବ ।
ଗୋପୀ ବୋଇଲେ କିଛି ନ ବିଗୃର । ଅମ୍ଭେ ଦେଖନ୍ତୁଁ ସବୁ ଅଳଙ୍କାର ।
ଏକା ଜିହ୍ବାର ହୋଇଲେ ରହିବୁ । କ'ଣ କ'ଣ ସବାକୁ ପଚ୍ଛେ ଦିବୁ ॥
ଯେବେ ଭଲ ଅଳଙ୍କାର ତୋହର । ମୂଲ୍ୟ ହୋଇଲେ ହୋଇବ ଅପାର ॥
ଅଳଙ୍କାର ଦେଖିବା କଥା ସତ । ଶୁଣି ଉଷତ ହେଲେ ଗୋପୀନାଥ ।
କୃଷ୍ଣ ବସିଲେ ସଙ୍ଗମୁଣି ରଖି । ବେଢ଼ି ବସିଲେ ସବ ଗୃହମୁଖୀ ।
ଦୁଟି ମୂରଛ ଅନାଇଁ ରହିଲ । ମନେ ଅଳପ ଅଳପ ହସିଲ ॥
ହସି ବୋଇଲେ କୃଷ୍ଣଙ୍କୁ ଚତୁରୀ । ବାବୁ କାହିଁ ରହିଛୁ ଘର କରି ।
ମୁଁ ତ ଦେଖିଛି ତୋତେ ଅନ୍ୟଥରେ । ଦନାଗୃହତଳେ ଏହି ଗୋପରେ ॥
ନାମ ସହିତେ ମୋତେ ଅସିଥିଲ । ତୋତେ ଦେଖି ମୋ ମନରେ ପଡ଼ିଲ ॥
ହେଉ ବୋଇଲେ ଯଶୋଦାକୁମର । ଜନ୍ମଭୂମି ମଧୁବନ ଅମ୍ଭର ।
କଂସ ଭୟେ ପିତାମାତା ଛାଡ଼ିଲେ । ଆଣି ନିକୁଞ୍ଜବନରେ ରଖିଲେ ।
ମୋର ନାମ କୃପାସିନ୍ଧୁ ମାଧବ । ଅଳଙ୍କାରକୁ ମୋର ନୁଆ ସବ ।
ଅମ୍ଭେ ଢାଳରେ ଉତ୍ତମ ସୁନାରି । ସବୁ ସୁନାରେ ଶରଧା ଅମ୍ଭର ॥
ସୁନା କାରବାର ଅମ୍ଭ କରିବା । ଅମ୍ଭଠାରୁ କେ ନ ଥିବ ଅଧିକା ।
ମୋତେ କେଉଁଠାରେ ତୁମ୍ଭେ ଦେଖିଛ । ଏହି ପ୍ରକାରେ ସବୁ କଥ ମିଛ ।
ମୁଁ ତ ଦିନେ ଅସିନାହିଁ ଗୋପକୁ । ମୋସ୍ବପର ଦେଖିଥିବ କାହାକୁ ।
ରାଧା ବୋଇଲେ କୃଷ୍ଣଙ୍କୁ ଉତ୍ତର । ବାବୁ ଆଣିଛ କି କି ଅଳଙ୍କାର ।
କୃଷ୍ଣ ବୋଇଲେ କହିଲେ କି ହେବ । ନ ଦେଖିଲେ ମନକୁ ନ ଆସିବ ॥
ଯେବେ ଥୋକାଏ ଶୁଣିବ କହିବା । କାହିଁପାଇଁ ତୁମ୍ଭ ବୋଲ ଲଙ୍ଘିବା ॥
ମୁହିଁ ଯେତେ ଅଳଙ୍କାର ଆଣିଛି । କାହୁଁନିବାକୁ ତହିଁ ନାହିଁ କିଛି ॥
ସବୁ ମୋହର ଗଢ଼ା ଅଳଙ୍କାର । କାମ କାହାର ଭିତର ସୁନ୍ଦର ।
ଅଛି ଝୁମକ ଝୁଣ୍ଟିଆ ଅପାର । କମ ଟଣ୍ଡେଲା ନାନା ପ୍ରକାର ।
ଅଛି ବାଙ୍କେଣୀ ନୂପୁର ଅପାର । ପାଦେ ଥିଲେ ମୋହୁଥିବ ସଂସାର ।
ମାଳା କନ୍ଧ୍ରତ ଅଛି ଅଠଅଂଶା । ପଦେ ଲଗିଲେ ପାଇବ ପ୍ରଶଂସା ।

ଅଛି ବହୁତ ରତନ ପାହୁଡ଼ । କେତେ ଯତନେ ହୋଇଛି ନବାଡ଼ ॥
ବମ ଚକ୍ରବାକି ଅଛି ଅପାର । ଦମ ପାଖକୁ ଦିଶିବ ସୁନ୍ଦର ॥
ଅଛି ଘୁଞ୍ଜର ଅଳୁକ ଅନେକ । ତାଙ୍କୁ ଯେନିବ ନ ଯେନିବା ଯେକ ॥
ଅଛି ବହୁତ କାମ ନୂଆ ଚୁଡ଼ୀ । ଯାଏ ବସିଛି ତହିଁ ଧାଡ଼ ଧାଡ଼ ॥
ଅଛି ଅପାର ବମ ନୂଆ ତାଡ଼ । ରସବନ୍ତୀ ଧରନ୍ତି ବନ୍ଦୀଗଡ଼ ॥
ଅଛି ଅପାର ଛାଟ ବନ୍ଦମାଳ । ଭୁଜେ ବାନ୍ଧିଲେ ପଡ଼ିବ ଝଲ୍ଲ ॥
ଅଛି ତେଉଁରିଆ ମାଳ ଅପାର । ତାଡ଼ ତଳକୁ ଦିଶିବ ସୁନ୍ଦର ॥
ଅଛି କାଞ୍ଚନ ସୁନାସୂତାମାନ । ପେନ୍ଧା ମନକୁ ତୁଲେ ବାଛି ଯେନ
ଅଛି ବହୁତ ଗଠନ କଙ୍କିଣୀ । ବାଛି ଯେନ ଗୋ ବରଜତରୁଣୀ ॥
ମାଳ ଅପାର ଅଛି ଗୁପସର । ତାକୁ ଯେନିବାକୁ ନାହିଁ ସୁନ୍ଦରୀ ॥
ମାଳ ଅପାର ଅଛି ସୋରିଷିଆ । ତହୁଁ ସୁନ୍ଦର ମଥୁରାପୁରିଆ ॥
ମାଳ ବଉଳମଞ୍ଜିଆ ଅପାର । ମାଳ ଲମ୍ବ ଅଛି ହାତ ଏଗାର ॥
ଅଛି ଯୋଡ଼ ମାଳ ଅତି ଯତନ । ସାନ ବଡ଼ ନାହିଁ ସବୁ ସମାନ
ବମ ଗଡ଼ା ଗଣ୍ଠିମାଳ ଅପାର । କଣ୍ଠମୂଳକୁ ଦିଶିବ ସୁନ୍ଦର ॥
ସବୁ ନକ୍ଷତ୍ର ଗଣ୍ଠିମାଳ ଅଛି । ମାନ କଥା କହୁ ନାହିଁ ହସୁଛି ॥
ଅଛି ଗରଡ଼ିଆ ଗଣ୍ଠି ମାଳ । ଗଣ୍ଠି ପଡ଼ୁନାହିଁ ସୁନା ଝିଲିକ ॥
ଅଛି ରତ୍ନଶିଆ ମାଳ ଅନେକ । ସୁନା ତୋଡ଼ଏ ମାତ୍ରରୁ ଅଧିକ ॥
ସୁରମୋହିନୀ ଗୋ ବାଛି ତୁ ଘେନ । ଓଣ୍ଠାବରତକୁ ଲେଡ଼ା ଯେମାନ ॥
ବମ ଧାନ ମାଳ ଅଛି ଅପାର । କଣ୍ଠସନ୍ଧିକି ଦିଶିବ ସୁନ୍ଦର ॥
ରେଛଣି ଗଣ୍ଠିପାଳ ଅତି ଯତନ । ତହିଁ ଲଟିଛି ହେମମାଳମାନ ॥
ମାଳ ଦଶ ଅବତାର ଅପାର । ମାଳ ଝୁମ୍ପାବନ୍ଧ ନାନାପ୍ରକାର ॥
ମାଳ ଅଁଳାମଞ୍ଜିଆ ବହୁତ । ସେହୁ ମାଳକୁ କଂଢ଼ି ବହୁତ ॥
ଅଛି ଅର୍ଦ୍ଧଚନ୍ଦ୍ର ଗୁଣା ଅନେକ । ତହିଁ ମାଣିକ୍ୟ ହୋଇଛି ନାୟକ ॥
ଅଛି ବକୁଳ ପଡ଼ ଗୁଣମାନ । ନାକତଳକୁ ଦିଶିବ ଯତନ ॥
ଅଛି କଜଳ ଗୁଣା ଗୋ ସୁକେଶି । ବାଛିଘେନ ତା ସମସ୍ତେ ପ୍ରଶଂସି ॥

କମ ପଦ୍ମ କେଶରୀଗୁଣା ଅଛି । ବାନ୍ଧୁଜବାରୁ ତହିଁ ନାହିଁ କଛି ॥
ଅଛି ଗଣନା ନାହିଁ ନୂଆ ଗୁଣା । ଗୁଣା ଗୋଟିଏ ନୂଆଇ ସୁରୁଣା ।
ଅଛି ହିସେବଚନ ଗୁଣା ଅନେକ । ତହିଁ ଶରଧା ପୂବଗାମାନଙ୍କ ।
କମ ହିଦ୍ଦଡ଼ା ଗଢ଼ିଅଛି ଅଣି । ତହିଁ କର ଦେବ କେଉଁ କହାଣି ।
କଳା ଷୁଣାରୁ କେହୁ ନ ପଡ଼ବ । ଗୁଣ ଖୁଣିଲେ ନାଡ଼ ରହୁଥିବ ।
ଅଛି ବହୁତ କମଘଷା ଗୁଣା । ଗୁଣା ଗୋଟିଏ ନୂଆଇ ପ୍ରବୁଣା ।
ଅଛି ନୂଆ ଫୁଲଗୁଣା ଅପାର । ମନ୍ଦକାସୀଳ ଦଶିବ ସୁନ୍ଦର ।
ଅଛି ଓଲଟ ମୁହଁ ନାକଚଣା । ଥଣ୍ଟ ମାଣିକ ଅଣିଧୁଇ ଦେଶା ।
ଅଛି ବଣ୍ଟି ନାକଚଣା ଅପାର । ସବୁ କାମ ଭଲରୁ ସେ ବାହାର ।
ଅଛି ସରୁ ନାକଚଣା ଅନେକ । ହୀରା ଖାଳା ଦୁଇଗୋଟି ମାଣିକ୍ୟ ।
ଅଛି ବଳ୍ଲିଲକୋଳ ନାକଚଣା । ସେ ଯେ ନାଗସ୍ତ୍ରୀମାନଙ୍କର ଗୁଣ ।
ଅମ୍ବକେରଥ ନାକଚଣା ଅଛି । ସବୁ ଏକାହୁଲେ ଗଢ଼ା ହୋଇଛି ।
ଅଛି ମୁକୁତା ଥୋପି ନାକୁଅସି । ଅଗକର ଦେନ୍ତବ ତା ପ୍ରଶଂସି ।
ଅଛି ଅପାର କମପଟି ଅମ । କଣ୍ଠପୂଠକୁ ହେବ ଅଭରାମ ।
ଅଛି ନୂଆ କମପାକ ଅନେକ । ଘସା କସିଛି ଗୃହପାଖ ଯାକ ।
ଅଛି କଣ୍ଠିଅ କମ ଶ୍ରୀଭଙ୍କାଛ । ଠୂଳ ତଜଦମାଢ଼ ତେରଭଛ ।
ଅଛି କଗଡ଼ା ଏ କନ୍ଦା କନ୍ଧଅ । ଣଏ କରଷ ହୋଇଥିବ ନୂଅ ।
ଅଛି ମାଣିକ୍ୟ ତାଠଙ୍କ କହୁତ । ମଝି କେଢ଼ରେ କସିଛି ମର୍କତ ।
ଅଛି ଅପାର କର୍ଣ୍ଣ ଫିଣ୍ଡିଫେସ । ଫଳ କାନକୁ ସେହ ସିନା ତୋଷ ।
ଅଛି ଦକ୍ଷିଣୀ କଳାବଳ ଗୁଣା । ମୂଲ୍ୟ ବାରସୁନାର୍ଯ୍ୟ ତେରଅଣା ।
ଅଛି ଷାସ୍ତ୍ରବସା ପେଣ୍ଡ୍ରି ଝଲକା । ସୁନା ସାତମ ଢ଼ି ଦୁଇପଦକା ।
ଅଛି ଫୁଲ ଢନଜାଣ ଅନେକ । ଫୁଲ ମଝିରେ କସିଛି ମାଣିକ୍ୟ ।
ଅଛି ସୁନ୍ଦର ଝଲକା ଅପାର । କାନେ ଥିଲେ ମେ ହୁଥିବ ହସାର
ଅଛି ହୀରା ମାଣିକ୍ୟ ମଛିକଢ଼ି । ମୂଲ୍ୟ ସହସ୍ର ସୁନାର୍ଯ୍ୟ କଉଡ଼ ।
ଅଛି ଗଠନ କାଣ୍ଡିଅ ଅପାର । ତହିଁ ଶରଧା କାଠୁଆଣୀବର ।

ଅଛି ବହୁଡ଼ି କସ ଚନ୍ଦ୍ରହ୍ମା । ଲଗାଇଲେ ସେ ସୁବର୍ଣ୍ଣ ଦମା
ଅଛି ଅଳକ ପ ଟି ସେନ ବାଛି । ଘଷ ଚୂନ ଗୃଢପ ଯେ ବସିଛି ।
ଅଛି ସବ୍‌କିଅ କସ ପ୍ରଡର । ସେ ଯେ କେଉଁଣି ଚୂଡ଼ାକୁ ସୁନ୍ଦର
ଅଛି ଅପୂର୍ବ ତାଡସୁନାକୁଦ । ତାକୁ ଦେଖିଲେ ସଭ ପାସୋରବ
ଅଛି କସ ଚଉଁସ୍ତି ମୁଣ୍ଡି ମାନ । ଖେଞ୍ଚା ତଳକୁ ଦିଶିବ ଶୋଭନ ।
ଅଛି ଗହଅଣି କସ ଅପାର । କଦ୍ଧ କାହିଁକି ଶରଧା ଭୂମର ।
ଏତେ କହି ବୃକ୍ଷ ଭଜ ହୋଇଲେ । ସବୁ ଅଳଙ୍କାର କାଢ଼ି ଥୋଇଲେ
କେ ବୋଲଇ ମୁଁ ସେନାବ ଗୁଞ୍ଜର । ମୋର କରକୁ ଦିଶିବ ସୁନ୍ଦର ।
କେ ବୋଲଇ ମୁଁ ସେନାବ ବସଣୀ । ମୋତେ ମୁକୁଳ ଦେବ ଯେ ସିତଣି
କେ ବୋଲଇ ମୁଁ ସେନାବ ...ଣ୍ଟି । ମୂଳ ପାଦ୍ମ ଅଚ୍ଛଳବଦ୍ଧ ।
କେ ବୋଲଇ ମୁଁ ସେନାବ ନୂପୁର । ମୋତେ ଦଣଦ କହୁଛୁ ଅପାର ।
କେ ବୋଲଇ ସେନାବ ନାକଚଣା । ମୁଦ ତାଙ୍କ ବୁଅବସା ଘୁଣା ।
କେ ବୋଲଇ ମୁଁ ସେନାବ ଝୁଣ୍ଟିଅ । ମୋର ଝୁଣ୍ଟିଅ ବୋଲଛୁ ପାଳୁଅ ।
କେ ବୋଲଇ ସେନାବ ମଲ୍ଲି କଢ଼ି । ବନ୍ଧାଦେଲ ଅଣ୍ଟିଦେବ କଉଡ଼ି ।
କେହୁ ବୋଲଇ ଶୁଣ ହେ ସୁନାର । ମୋତେ ସାତପୋଡ଼ଦେବ କବୁସ
କେ ବୋଲଇ ସେନାବ ଯୋଡ଼ାମଣ୍ଡ । ଶାଶୁଦେଲେ ଦଅନ୍ତୁ ପଛେ ଗାଳି
କେ ବୋଲଇ ମୁଁ ସେନାବ ନୂପୁର । ଅଣିଦେବ ଅଛି ଯେତା ମୋହର
କେ ବୋଲଇ ସେନାବ ନାକୁଅସି । ମନ ଥାଉ ତହିଁରେ ଅହର୍ନିଶି ।
କେ ବୋଲଇ ମୁଁ ସେନାବ କଙ୍କଣୀ । ମୋତେ ମୁକୁଳ ଦେବୁଟି ସିତଣି
କେ ବୋଲଇ ମୁଁ ନେବ ଧାନମାଳ । ବାଛି ଝୁଲବା ତାଉ କଢ଼ି ଅଣ
କେ ବୋଲଇ ମୁଁ ନେବ ...ଢ଼ି । ମୋତେ ଶରଧାମାଡ଼ିଲ ତହିଁକି
କେ ବୋଲଇ ମୁଁ ଯେ ନେବ ପାଉଁଥ । ବନ୍ଧାଦେଇଯିବ କାନବଧଅ
ସୁଧା ବୋଲଇ ମୁଁ ନେବ ନୂପୁର । ପୁଣି ନାକଚଣା ଦିଅପତର ।
ତାଡ଼ ବଦଅ ବାହୁ ନେବ କଣି । ଅଗ ବର ବଉଳ ଦେବ ଗଣି ।
ଦୁଗ ବୋଲଇ ମୁଁ ନେବ ଗଣ୍ଠିଅ । ବାଳାବଳ ସୁଣା ନୂଅ ଝୁଣ୍ଟିଅ ।

ସୁତା ଝଲକା ବନ୍ଧଅ ବସଣି । ମୋତେ ବାଛିଦଅ ନୂଆ ବନ୍ଧାଣି ।
କୃଷ୍ଣ ବୋଇଲେ ତୁମ୍ଭେ ବାଛି ନିଅ । ସବୁ ଅଳଙ୍କାର ତୁମ୍ଭେ ମୂଲଅ ।
ଶୁଣି ଦୂତିକା ଅଳପ ହସିଲା । ସବୁ ଅଳଙ୍କାରୁ ଗୋଟିକ ବାଛିଲା ।
ଯେଉଁ ଅଳଙ୍କାର ମୂଲ୍ୟ ଯେମନ୍ତ । ଦୂତୀ ମୂଲ୍ୟ ମୁଲଇଲେ ତେମନ୍ତ ।
ରାଧା ସହିତ ସକଳ ସୁନ୍ଦରୀ । ସବୁ ସଙ୍ଗ ଘେନିଲେ ମୂଲ୍ୟକରି ।
ସଙ୍ଗ ସବୁରି ମନକୁ ମୋହିଲା । ସଙ୍ଗ ସେହ୍ନଣି ଶେଷ ହୋଇଲା ।
ଗୋପୀ ବୋଇଲେ ମହାଜନ ପୁଅ । ଏଥେଁ ବସାଇବ ରାତିକ
ରହ । ସନ୍ଧ୍ୟା ଏହୁକ୍ଷଣି ଆସି ହେଇବ । ଏକା ହୋଇ କେନେ
କପରି ଯିବ । କୃଷ୍ଣ ବୋଇଲେ କାହିଁକି ରହିବୁଁ । ଅଇ ଯେତେ
ଉତ୍ତର ହେଲେ ଯିବୁଁ । ଆମ୍ଭ କଉଡ଼ି ବେଗେ ଆଣ ଯାଇଁ ।
ଏତେ ହରବର କର କପାଇଁ । ଯେବେ ନ ଦେବ କଉଡ଼ି
ଆମ୍ଭଙ୍କୁ । ଜଣେ ବନ୍ଧା ଦେଇ ଯାଅ ଘରକୁ । ଆମ୍ଭ କଉଡ଼ି
ଯେତେବେଳେ ଦେବ । ତୁମ୍ଭ ସଖୀଙ୍କୁ ତୁମ୍ଭେ ଘେନିଯିବ ।
ଗୋପୀ ବୋଇଲେ ଶୁଣ ମହାଜନ । ବାବୁ କେଉଁଠାରେ ଅଛ
ଏମାନ । ଦାଣ୍ଡ ଲୋକ ଶୁଣିଲେ କ ବୋଲିବେ । ଶାଶୁ ନଣନ୍ଦ
ଶୁଣିଲେ ଚଳିବେ । ଆମ୍ଭେ କଉଡ଼ି ଆଣିବା ପାଇଁକି । ତୋତେ
ବନ୍ଧା ଦେଇଯିବୁଁ କାହିଁକି । ଦନେ କିଣିନାହୁଁ କି ଅଳଙ୍କାର ।
ତୋହର କଥାଯାକ ତୋତେ ସୁନ୍ଦର । କୃଷ୍ଣ ବୋଇଲେ ସୁନ୍ଦର
କେମନ୍ତ । ମୋହର କଥାଯାକ ସବୁ ଉଚିତ । ଜଣେ ବନ୍ଧା ଥିଲେ
ଭଲ ହୋଇବ । ତୁମ୍ଭ ନ ଆସିବା ମତ ନୋହିବ । ସଖୀ ଦେହ
ତ ଘେନିଯିବ ନାହିଁ । ଆମ୍ଭେ ଘେନି ତ ନ ଯିବୁଁ ପଳାଇ ।
ତୁମ୍ଭେ ଆସିବାଯାଏ ରହିଥିବ । ମୂଲ୍ୟ ଦେଲେ ସଖୀକି ଘେନ-
ଯିବ । ସବୁ ଗୋପୀ ବୋଇଲେ ହେଉ ହେଉ । ଆମ୍ଭ ମିତଣୀ
ରାଧା ବନ୍ଧାଥାଉ । ଦୂତୀ ଥାଉ ପଛେ ରାଧା ସଙ୍ଗରୁ । ଗୃହ ସଖୀ
ସବୁ ଯିବା ଗୋପକୁ । ଏବେ ବୋଲି ସବୁ ଗୋପୀ ଆଇଲେ ।

ରାଧା ଦୂତୀ କୃଷ୍ଣ ପାଦେ ପେଶିଲେ । ଯୋଗୀ ଗୋପରେ ହୋଇଲେ ପ୍ରବେଶ । କୃଷ୍ଣ ଶରଣ ପାଳକୃଷ୍ଣ ଦାସ । କୃଷ୍ଣ ବୋଇଲେ ରାଧାକୁ ଉତ୍ତର । ତୋହ ନିମନ୍ତେ ଏ ରୂପ ଅମ୍ବର ॥ ଏତେ କହି ନିଜ ରୂପ ଧଇଲେ । କୋଟି କନ୍ଦର୍ପ ପରସ୍ତ ହୋଇଲେ । ଶିରେ ସେବତୀ ଫୁଲ ଶୋଭିବନ । କଟିତଟେ ଶୋଭେ ପୀତବସନ । କରେ କଙ୍କଣ ଶୋଭେ ବନମାଳ । ତଥି ମଧ୍ୟେ ସୁନ୍ଦର ବନମାଳ । ତନୁ ନବଘନ ପ୍ରାୟ ସୁନ୍ଦର । ଦେଖି ରାଧା ଦୂତୀ ହେଲେ କାତର । ବେନିସଖୀ କୃଷ୍ଣପାଦେ ପଡ଼ିଲେ । ଉଠି ଖଣ୍ଡେଦୂରେ ଉଭା ହୋଇଲେ । ଦୂତୀ ବୋଇଲେ ଯୋଡ଼ି କେନିକର । ପ୍ରଭୁ ତୁମ୍ଭେ ତ କପଟ ମାୟା ଧର । କେତେ ରୂପସ୍ତୁ ଜାଣ ନଟବର । କିଏ ଚରିତ ତାହା ଅନ୍ତକର ॥ ଏହୁକ୍ଷଣି ସୁନାରୀ ହୋଇଥିଲ । ଏବେ ଏ ରୂପ କାହିଁ ରଖିଅଇଲ । କୃଷ୍ଣ ବୋଇଲେ ଶୁଣ ଗୋ ଦୂତୀ । ରାଧାପାଇଁ ସିନା ଏତେ ଭାବକା । ଅଛି ସୁନାରୀ ତାହାର ନିମନ୍ତେ । ଦୂତୀ ଉତ୍ତାର କେଉଁକଥା ହୋଇତେ ॥ ଏତେ କହି ରାଧା କର ଧଇଲେ । ବେନିଜଣେ କୁଞ୍ଜବନେ ମିଳିଲେ । କେତେ ରଙ୍ଗରେ ରହିରସେ ମାତି । କଲେ ଅଭେଦ ସୁରତ ପିରତି । କେଳି ସାରି ବେନି-ଜଣେ ହରଷ । ଏକା ହୃଦନ ହେଇଲ ଦରଶ । କୃଷ୍ଣ ରାଧାଙ୍କ ପାଶେ ବସାଇଲେ । ସବୁ ଅଳଙ୍କାର ଅର୍ପି ଦେଲେ । ରାଧା ବୋଇଲେ ଶୁଣ ହେ ମାଧବ । ଏତେ କପଟ ମୋହ ଛର ପାଇଁ । କେତେ ସୁବଟୀ ନାହାନ୍ତି ଗୋପରେ । ପ୍ରଭୁ ଏକା ଅନୁରାଗ ମୋ ପରେ । କୃଷ୍ଣ ବୋଇଲେ ତୁ ମୋର ଜୀବନ । ତୋହବିନ୍ତୁ ମୁଁ ନ ଜାଣଇ ଆନ । ଏହା ନ ବୁଝି ବୋଇଲୁ ଏସନ । ଏହୁମତି ତୋଠାରେ ଥାଏ ମନ । ରାଧାକୃଷ୍ଣ କେଳି ଏକୁ ସାଗର । କହିବାକୁ ସମର୍ଥ କେଉଁ ଛାର । କେଳି ସାରି

ଶ୍ରୀଅଙ୍ଗ ପଖାଳିଲେ । ରଙ୍ଗେ ଝୁଟୀର ପତନୀ ପିନ୍ଧିଲେ । ରାଧା ଭର ଧରି ଜଗନ୍ମୋହନ । ଦୂତୀ ପାଶରେ ମିଳିଲେ ବହନ । ଦୂତୀ ଅଳପ ଅନାଇ ହସିଲା । ପାଇ ସୁଧୂବାର ପାଶେ ବସିଲା । କୃଷ୍ଣ ବୋଇଲେ ଦୂତୀଙ୍କ ଉତ୍ତର । ଅମ୍ଭେ ଯାଉଛୁଁ ଗୋ ନିଜ ମନ୍ଦିର । ସବୁ ସଖୀ ଅଇଲେ ତୁମ୍ଭେ ଯିବ । ଅଜ ଏମାନ କଥା ନ କହିବ । ଏତେ କହି ଅନ୍ତର୍ଦ୍ଧାନ ହୋଇଲେ । ନନ୍ଦ ମନ୍ଦିରେ ଯାଇ ପ୍ରବେଶିଲେ । ଗୋପୀ ବୋଇଲେ ଶୁଣ ଗୋ ଦୂତିକା । ସେ କାହ୍ନାଙ୍କୁ ତୁମ୍ଭେ ତ ଅଛ ଏକା । ଦୂତୀ ବୋଇଲେ ଶୁଣ ଗୋ ସଙ୍ଗିଣି । ତାଙ୍କ ଦେବତା ପରାୟେ ତ ଜାଣି । ସେତ ସେହୁ ବୃନ୍ଦାବନେ ପଶିଲେ । ଯେତେ ଡାକିଲେ ଅଉ ନ ଆସିଲେ । ଅମ୍ଭେ କେତେ ହଣା ହାଣି ହୋଇଲୁଁ । ଅଉ କେବେହେଁ ତାଙ୍କୁ ନ ଦେଖିଲୁ । ଶୁଣି ଗୋପୀମାନେ ପୁଣି ହସିଲେ । ବଳି ନାହିଁ କୃଷ୍ଣ ବୋଲି କୋଇଲେ । ଗୋପୀ ଗୋପରେ ହୋଇଲେ ପ୍ରବେଶ । କୃଷ୍ଣ ଚରଣେ ଜନକୃଷ୍ଣ ଦାସ ।

ସମାପ୍ତ

ମୁଦ୍ରକ—ଶ୍ରୀଲକ୍ଷ୍ମୀଧର ଶତ୍ରୁବର୍ଦ୍ଧ, ଶ୍ରୀରାଧାରମଣ ପ୍ରେସ୍,
କଟକ—୧୯୫୧

